# ବାତଦୂତ



## ଚିକିଟି ପଟ୍ଟାଏତ


ଶ୍ରୀ ଶ୍ରୀ ଗୋପୀନାଥ ଦେବ, ତତ୍ତ୍ୱନିଧି

M. R. A. S.; M. B. D. M

ଙ୍କ ପ୍ରଣୀତ ଓ ପ୍ରକାଶିତ ।



ପ୍ରଥମ ମୁଦ୍ରଣ

The ASHA Press,

BERHAMPUR.

1928

ମୂଲ୍ୟ ୪୦ । ଚୁର ଅଣା

# ଭୂମିକା

ଏକଦା ସ୍ଥାନୀୟ ରମଣୀୟ ଚୈତନ୍ୟ କାନନ ମଧରେ
ବାସନ୍ତିକ ସୌନ୍ଦର୍ଯ୍ୟାନୁଭବାର୍ଥ ଭ୍ରମଣ କରୁ କରୁ
ହଠାତ୍ ବାର୍ଷପର୍ବଣୀ ଓ ଦେବଯାନୀଙ୍କ
ଚରିତ ହୃଦୟରେ ଜାଗରୂକ
ହେବାରୁ, ଏହା
କାତଦୂତ
ଲେଖିବାରେ
ପ୍ରବୃତ୍ତ ହେଲି । ଆଶା କରେ
ପାଠକ-ଗଣ ଲେଖାରେ ମାଧୁର୍ଯ୍ୟ
ନ ଥିଲେ ସୁଦ୍ଧା ପୌରାଣିକ ଚରିତର
ମନୋମୁଗ୍ଧକାରିତା ଅନୁଭବାର୍ଥ ପାଠ କରିବେ ।

ଉତ୍କଳ-ଦୁର୍ଗ
ଜ୍ୟେଷ୍ଠ ପୂର୍ଣ୍ଣିମା
୭ । ୬ । ୧୯୬୫ } ରଚୟିତା



Sri Sri Gopinath Deb; Tatwanidhi, M R.A.S; M.B.D.M.

Second Prince of Tekkali.

# ବାତ ଦୂତ

## ପୂର୍ବାର୍ଦ୍ଧ

[ ବୃତ୍ତ—ବଙ୍ଗଳାଶ୍ରୀ ]

ଶିଶୁଚନ୍ଦ୍ର କଳାଳଙ୍କାର
ଶୋଭାବତୀ ଜନନୀ !
ପୂର୍ଣ୍ଣ କର ମନୋରଥ ଗୋ
ସର୍ବ ବିଘ୍ନ ନାଶନୀ । ୧ ।

ଯେବେ ବୃଷପର୍ବା ନନ୍ଦିନୀ
ସର୍ବ ଲକ୍ଷଣବତୀ
ଜଳକେଳି କାଳେ ଭାର୍ଗବୀ
ଦେବଯାନୀଙ୍କ ପ୍ରତି । ୨ ।

ବାସ ପରିବର୍ତ୍ତେ ସରୋଷେ
କହି କଟୁ ବଚନ
ପେଲିଦେଇ କୂପେ ଅରଣ୍ୟେ,
ଗଲେ ନିଜ ଭବନ । ୩ ।

ତଦା ମହାରାଜା ଯଯାତି
ମୃଗୟାର୍ଥ ସେ ବନେ
ବୁଲୁଥିଲେ, ଆର୍ତ୍ତନାଦ
ପଡ଼ିଗଲା ସ୍ୱ କର୍ଣ୍ଣେ । ୪

ନାଦ ଅନୁସର ଚାଲିଲେ
ଯାଇ ଦେଖିଲେ ତହିଁ
ଉଲଗ୍ନ ଯୁବତୀ ଗୋଟିଏ
ଅଛି ସେ କୂପେ ରହି । ୫ ।
ପିନ୍ଧିବାକୁ ଶୀଘ୍ରେ ଦେଲେ
ଉତ୍ତରୀୟ ନିଜର
ଉଠାଇ ଆଣିଲେ ବାହାରେ
କରେ ଧରି ତା କର । ୬ ।
ପଶ୍ଚାତେ କହି ଯୁବତୀ
ନିଜ ବୃତ୍ତାନ୍ତଚୟ
ବୋଇଲା ଆପଣ ମୋହର
ବର ହେବେ ନିଶ୍ଚୟ । ୭ ।
ବ୍ରାହ୍ମଣ କନ୍ୟକା ଅଶଙ୍କା
ଛଡ଼ାଇଲେ ତାଙ୍କର
କାନ୍ଦି କାନ୍ଦି ତହୁଁ ଚଳିଲେ
ବେଗେ ନିଜ ନଗର । ୮ ।
ପ୍ରଣମି ପିତାଙ୍କୁ ପୁରତେ
ଉଭା ହୋଇ ସ୍ୱନଶ
କହିଲା ଶର୍ମିଷ୍ଠା ବଚନ
ବାନ୍ଧିଥିଲା ଯେପରି । ୯ ।
ଶ୍ରବଣ ମାତ୍ରକେ ନନ୍ଦନୀ-
ଅପମାନ ନ ସହି
ରାଜ୍ୟ ତେଜି ଭୃଗୁ ଚଳିଲେ
ଅନ୍ୟସ୍ଥାନେ, ନ କହି । ୧୦

ଏଥୁଅନ୍ତେ ରିପୁ ଆକ୍ରାନ୍ତ
ହୋଇଲେ ଦନୁଜମଣି,
ମନ୍ତ୍ରବଳ କାବ୍ୟ ବିହୁନେ
ଯୁଦ୍ଧେ ଜୟ ନ ମଣି । ୧୧ ।
ଡ଼କାଇ ତାହାଙ୍କୁ ନ ପାଇ
ରାଜା ହୋଇ ଆତୁର
ଗୁରୁ ପରିତ୍ୟାଗ କାରଣ
ପୃଚ୍ଛାକଲେ ଚତୁର । ୧୨ ।
କେହି ଆମ୍ଭେ କିଛି ନ ଜାଣୁ
ବୋଲି କହିଲେ ଜନେ,
ତେଣୁ ଅନ୍ତଃପୁରେ ପୃଚ୍ଛିଲେ
ଯାଇ ନୃପ ବଦନେ । ୧୩ ।
ପିତାଙ୍କ ଆକୁଳ ବଚନ
ଶୁଣି ନୃପ ନନ୍ଦିନୀ
କରଯୋଡ଼ି ତାଙ୍କୁ ଶର୍ମିଷ୍ଠା
ଦେଲେ ସବୁ ବଖାଣି । ୧୪ ।
ସେହିକ୍ଷଣି କାବ୍ୟ ରହିବା
ସ୍ଥାନେ ମିଳିଲେ ନୃପ,
ବିପଦ ଜଣାଇ ଶରଣ
ଗଲେ ଯେଣୁ ସେ ଭୂପ । ୧୫
କନ୍ୟାର ସନ୍ତୋଷ ବିହୁନେ
ନ ଅସିବି, ରାଜନ !
ସ୍ୱରାଜ୍ୟେ ତେଣୁ ହେ ତାହାର
ଇଚ୍ଛା କର ପୂରଣ । ୧୬ ।

ସେ ବଚନେ ନିଜ ରକ୍ଷଣ
ମାର୍ଗ ପାଇ ଦାନବ
ଦେବଯାନୀ ଇଚ୍ଛା ବୁଝିଲେ
ନ ଧରି ଦୁଃଖ ଲବ । ୧୭ ।
ଶୁଣିଲେ ଶର୍ମିଷ୍ଠା-ଦାସୀଙ୍କ
ଅବଶ୍ୟକ ତାଙ୍କର,
ସନମତ କଲେ ନୃପତି
ଯଥା ନୃପେ ଶଙ୍କର । ୧୮ ।
ସେକ୍ଷଣି ଭାର୍ଗବ ମିଳିଲେ
ଧାଇ ନିଜ ନଗରେ,
ଖଣ୍ଡିଲେ ରାଜାଙ୍କ ବିପଦ
ମନ୍ତ୍ର ତନ୍ତ୍ର ରବଲେ । ୧୯ ।
ପରେ ଭୃଗୁ କନ୍ୟା ବଚନେ
ଯଯାତିଙ୍କୁ ଡକାଇ
ଅର୍ପିଲେ ଦୁହିତା ଉତ୍ସବେ
ନିଜ ପୁର ମଣ୍ଡାଇ । ୨୦ ।
କହିଲେ ହେ ନୃପ ! ମୋ ସୁତା
ଅବିରୋଧେ ରହିବ,
ବିରୋଧେ ଅବଶ୍ୟ ତୁମ୍ଭର
ବିପଦ ସମ୍ଭବିବ । ୨୧ ।
ଏତେ କହି ଦେଲେ ବିଦାୟ,
ତହୁଁ ରାଜା ଯଯାତି
ଦେବଯାନୀ ସହି ଚଳିଲେ
ମହା ଆନନ୍ଦେ ମାତି । ୨୨ ।

ସେହୁ ଦନୁ ଦେବଯାନୀଙ୍କ
ଦାସ୍ୟ କର୍ମ କରତା,
ଶର୍ମିଷ୍ଠା ସେବନ୍ତ ଭାର୍ଗବୀ
ମନଜାଣି ସଯତା । ୧୩ ।
ଭାର୍ଗବୀ ବଚନେ ଯଯାତି
ଶର୍ମିଷ୍ଠାଙ୍କ ନିମନ୍ତେ
ନିର୍ମାଇ ନିଳୟ ରଖାଇ
ଦେଲେ ଉଦ୍ୟାନ ଅନ୍ତେ । ୧୪ ।
ଭୃଗୁ ଭୟେ ଜାୟା ବଚନ
ମାନି ନୃପଶେଖର
ତେଜିଲେ ସେ ରମ୍ୟ ଆଶ୍ରମ
ଅଭ୍ୟନ୍ତର ବିହାର । ୧୫ ।
ତେଣୁ ସେ ଦନୁଜ ନାୟକ
ତନୁଜା ସୁକୁମାରୀ
ସେ ନୃପ ସ୍ୱରୂପ ସୁଗୁଣ
ଗୁଣେ ହେଲେହେଁ ଢାଉ । ୧୬ ।
କି କରିବେ ଦାସ୍ୟ ରକ୍ଷଣେ
କରି ଆଜ୍ଞା ପାଳନ
ରହିଲେ ଉଦ୍ୟାନେ କେବଳ
କରି ଦୁଃଖିତ ମନ । ୧୭ ।
ଏକେତ ନୃପତି ତନୁଜା
ସର୍ବ ଲକ୍ଷଣବତୀ
ଶରଦ ସମ୍ପୂର୍ଣ୍ଣ ଚନ୍ଦ୍ରମା
ରମ୍ୟମୁଖୀ, ସୁଦନ୍ତୀ । ୧୮ ।

ମତ୍ତ ଖଞ୍ଜରୀଟ ନୟନା
କ୍ଷତ ଦର୍ପଣ ଗଣ୍ଡ
ଭାଲ ତଳେ ଅର୍ଦ୍ଧସୁଧାଂଶୁ
ଶୋଭା କରନ୍ତି ରୁଣ୍ଡ । ୨୯ ।
ତିଳ ପୁଷ୍ପ ଜିଣି ସୁନାସା—
ପୁଟ ଅତି ସୁନ୍ଦର
କଟାକ୍ଷେ କରବ ସ୍ୱାଧୀନ
ବ୍ରହ୍ମମୁନି ଅନ୍ତର । ୩୦ ।
ସୁଧାକର କର ନିନ୍ଦଇ
ଗୃଢ଼ୁ ହାସ ପ୍ରକାଶ
ଚନ୍ଦ୍ରାଗିର ଶୁଭେ ତାହାର
ବୀଣା ସ୍ୱର ସଙ୍କାଶ । ୩୧ ।
କମ୍ବୁକଣ୍ଠୀ ରମ୍ୟ ମୃଣାଳ
ଜିଣି ବାହୁବଲ୍ଲୀ
ଛାଡ଼ଇ ସୁଦୀର୍ଘ ନିଃଶ୍ୱାସ
ନବ ପଲ୍ଲବପାଣି । ୩୨
କିଛି କାଳ ଅନ୍ତେ ହୋଇଲା
ଆସି ମଧୁ ସମୟ
କାମବାଣେ ତନୁ ଫୁଟିଲା
ବହେ ଧୀର ମଳୟ । ୩୩ ।
ସତୀ ଶିରୋମଣି ନୃପତି—
ପାଶେ ଦୂତ ସପ୍ରତି
ପ୍ରେରିବାକୁ ବାଣୀ ଭଣିଲା
ଧୀର ସମୀର ପ୍ରତି । ୩୪ ।

ପଞ୍ଚଶର ଶର ଜାଳରେ
ଯେଣୁ ତା-ଜ୍ଞାନ ନାହିଁ ,
ଅଚେତନ ବୋଲି ହୁଅନ୍ତା
ବିବେଚନା ବା କାହିଁ । ୩୫ ।
ଅଶ୍ରୁଜଳସିକ୍ତ ନୟନୋ-
ତ୍ପଳେ ରଚିଲା ଅର୍ଘ୍ୟ,
ମନେ ମନେ ବହୁ ଅର୍ଚ୍ଚନା
କଲା ତାରେ ଅନର୍ଘ୍ୟ । ୩୬ ।
କହିଲା ଜଗତ୍ ପ୍ରଶସ୍ତି
ଶ୍ରୀଚନ୍ଦନ ଅଚଳ
ତୁମ୍ଭ ଜନ୍ମଭୂମି ଯେଣୁ ହେ
ଅଟ କୁଳୀନବର । ୩୭ ।
ତ୍ରିଲୋକ ମୋହନ କାରକ
ଗୌରବର ମଦନ—
ମିହତାରୁ ତବ ଶଉର୍ଯ୍ୟ
ଖ୍ୟାତ ତିନି ଭୁବନ । ୩୮ ।
ଜଗତ ପଗ୍ଣ ରକ୍ଷଣ
ହେତୁ ଜଗତ ପ୍ରାଣ,
ସକଳ ।ଣୀଙ୍କ ମିଥୁନ—
ଭାବେ ଅଟ ନିଦାନ । ୩୯ ।
ଧବ ଭୁବ ଜଳେ ଅନଳ
ଗତ ତବ ସମାନ,
ହେ ମରୁତ ! କେହ ତୁମ୍ଭର—
ନାହିଁ ବଡ଼ ବା ସାନ । ୪୦ ।

ଏଣୁ ତୁମ୍ଭେ ଧୀର ବୋଲାଅ,
ଅହେ ସନ୍ତତ ଗତ !
ମୁଁ ଅବଳା ଜନ ହୁଅହେ
ମୋର ଗତ ଫପ୍ରତ ୪୧ ।
ପଶିଲି ଶରଣ ରଖ ବା
ତୁମ୍ଭେ ନ ରଖ ମୋତେ,
ନିଶ୍ଚଳ-ବୋଲି ତୁମ୍ଭଙ୍କୁ
ଗଲି ମୁଁ-ପ୍ରତେ-ସତେ '୪୨ ।
ପବନ ବୋଲାଅ ପବସ
ଭବ ଧେନ ଜଗତେ,
ମୋର ଅରକ୍ଷଣେ ଲୁପତ
ହେବ ତାହା ନିଶ୍ଚିତେ । ୪୩ ।
କରୁଚ ପ୍ରଣାମ ତୁମ୍ଭଙ୍କୁ
ଶତ ସହସ୍ରବାର
ମୋ ବାରତା ପ୍ରିୟ ସମୀପେ
କର ବାରେ ପ୍ରଚାର । ୪୪ ।
ଯିବ ଯେଉଁ ମାର୍ଗେ ସେଠାକୁ
ଅଗେ କହୁଚ ଶୁଣ
ମୋ ସନ୍ଦେଶ ପଛେ ଶୁଣିବ
ଅହେ କାର୍ଯ୍ୟ--ନିପୁଣ ! । ୪୫ ।
ତୁମ୍ଭ ସମାଗମେ ସାନନ୍ଦେ
ଏହୁ ମର୍ତ୍ତ୍ୟ ମତଲ୍ଲି
ଲୁଙ୍ଗ ଗୁଣୁ ଗୁଣୁ କପଟେ
ଦେଉଛୁ ହୁଳହୁଳି । ୪୬ ।

ସୁମନ ସୁହାସ ପ୍ରକାଶେ
ଶାଖା—କର କମ୍ପାଇ
ଦେଖ ଦେଖ କେଡେ଼େ ଡ଼ାକଇ
ଏବେ ମିଳିବା ପାଇଁ । ୪୭ ।
ନ ଗ୍ରହ ସୁଯୋଗ ତା ସହ
କ୍ଷଣେ ମାତ୍ର ବହର
ଅଲିଙ୍ଗନ କର ଚଳିବ
ଲବେ ହେଳା ନ କର । ୪୮ ।
ପ୍ରିୟ ସନମାନ ପ୍ରାପତ
କଥାମାତ୍ର ନିସ୍ପୃତେ
କାମିନୀ ଜନଙ୍କ ସୌଭାଗ୍ୟ—
ସିଏ ଯେଣୁ ଜଗତେ । ୪୯ ।
ତହୁଁ ଧାଇ କଣ୍ଟ ଉତ୍ତର
ଧଣେ ସାନନ୍ଦ ମନେ
ଥିବ ତ ଗୋଲାପ ସୁନ୍ଦରୀ
କଣ୍ଟକତାପଦନେ । ୫୦ ।
କଳପୁଞ୍ଜ ରକ୍ତ ବସନ
ଗନ୍ଧ ଅନୁରାଗିଣୀ
ଯହିଁ ରହିଥିବ ଭ୍ରମର
ଆଗମନ ସରଣୀ । ୫୧ ।
ପରକାଶୁଥିବ ଚୌଦିଗେ
ରମ୍ୟ ସୁପରିମଳ,
ଭ୍ରମର ଦର୍ଶନ ମାତ୍ରକେ
ହୋଇଯିବ ବହ୍ୱଳ । ୫୨ ।

ରହୁ ତହୁଁ କ୍ଷଣ କଂସ୍ଥିତ
ତୁମ୍ଭେ ଯଥା ସମ୍ଭବ
ବାସ୍ପ ହରନେଇ କୌତୁକେ
ତହୁଁ ଚଳିବ ଜବ । ୫୩ ।
ତାହା ପାଶେ ଥିବ ମାଧବୀ
ଗୁଚ୍ଛେ ହୋଇ ମଣ୍ଡିତା
ରକ୍ଷିଥିବ ଅନବରତେ
ହୃଦେ ତୁମ୍ଭର ଚିନ୍ତା । ୫୪
ଦରଶନ ଦେଇ ତାହାକୁ
ଅଳ୍ପ ଦେବ କମ୍ପାଇ
ପଛେ ପରଶିବ ସଧୀରେ
ତାହା ପାଶକୁ ଯାଇ । ୫୫ ।
ଯାଉଁ ଯାଉଁ ମାର୍ଗେ ଦେଖିବ
ରକ୍ତାଶୋକ ବଲ୍ଲସ୍ତ
ଯାଉଥିବ ତାହା ସୁନ୍ଦର
ସ୍ୱଗ ବାଟେହ୍ୟ ପ୍ରସସ୍ତ । ୫୬ ।
ନବୀନ ପୁଷ୍ପିତା ତୁମ୍ଭର
ଆଦ୍ୟ ଦର୍ଶନ ମାତ୍ରେ
ଗୋପନ କରି ନ ପାରିବ
ନିଜ କମ୍ପନ ଗାତ୍ରେ । ୫୭ ।
ରମ୍ୟ ବାସ ଅବଗୁଣ୍ଠନେ
କରିଥିବ ଅଦର
ବଶ କରିବାକୁ ନିରତେ
ତବ ନେତ୍ର ଅନ୍ତର । ୫୮ ।

ଭୃଙ୍ଗକୁଳ ଗୁରୁ ଗୁଞ୍ଜନ
ଛଳେ ଶମ୍ଭୁ-ସ୍ମରତ
ଗାଉ ଥିବ ଅନବରତେ
ଦେଇ ଶମ୍ଭୁରେ ମତ । ୫୯ ।
ସତୀ ଜନ ପଦସଂସର୍ଗେ
ସତୀକୁଳ ମୋଃହୃତା
ସୌଭାଗ୍ୟ ସମ୍ପଦ ଦର୍ଶାଇ
ଅଛୁ ପତିବରତା । ୬୦ ।
ସର୍ବାଙ୍ଗ ଅଶ୍ଳେଷ ଅର୍ପିବ
ଗାଢ଼େ ତା ବାସ ହର
ଅନ୍ୟଥା କହେବ ଆଉ ବା
ଏଡ଼େ ସୁଷମା ଧର । ୬୧ ।
ନ କରବ ତହିଁ ବିଳମ୍ବ
ଅହେ ମଧୁ ମରୁତ !
ବିଳମ୍ବେ ବଢ଼ିବ ଯାତନା
ଯେଣୁ ମୋର ବହୁତ । ୬୨ ।
ତେଣେ ସୁପବିତ୍ରକାରକ
ଶମ୍ଭୁ ପବନ ନାମ
କଳଙ୍କିତ ହେବ ନିଶ୍ଚୟ
ଅଉ ଶମ୍ଭୁର ଧାମ । ୬୩ ।
ତହିଁ କେତେଦୂର ଗମିବ
ପ୍ରଭଞ୍ଜନ ସଧୀରେ
ବକୁଳ ବନିକା ଦେଖିବ
ତହିଁ ଅତି ରୁଚିରେ । ୬୪ ।

କରୁଥିବ ପୁଷ୍ପବର୍ଷଣ
ମକରନ୍ଦ ମିଳାଇ,
ପରିମଳଭରେ ଦିଗନ୍ତ
ଦେଉଥିବ ପୂରାଇ । ୭୫ ।
ଗୁଞ୍ଜା ଗୁଞ୍ଜା ପୁଷ୍ପେ ମଧୁର
ଶାଖା ଶିଖାକୁ ମଣ୍ଡି
ମୂଳ ଭୂବ ଘନ ଛାୟାରେ
ଥିବ ଆତପ ଖଣ୍ଡି । ୭୬ ।
ମଧୁପ ନିକର ମରନ୍ଦ
ପାନେ ହୋଇ ଉନ୍ମତ୍ତ
ଭ୍ରମୁଥିବେ ତାହା ଚୌଦିଗେ
ହୋଇଣ ଇତସ୍ତତ । ୭୭ ।
ମେନକା ପ୍ରଭୃତି ଅମର-
ଙ୍ଗନା ତିରସ୍କାରଣୀ
ସୁଷମା ସମ୍ପନ୍ନ ନୃପତି
ଅନ୍ତଃପୁର ଗୃହିଣୀ । ୭୮ ।
ପୂଜନ୍ତି ଅନଙ୍ଗ ସେବୃକ୍ଷ—
ମୂଳେ ଭକତିଭରେ,
ପଡ଼ୁଥିବ ପୂଜା କୁସୁମ
ତାହା ବଳ୍କଳ ଥରେ । ୭୯ ।
କ୍ଷଣମାତ୍ର ରହ ତହିଁରେ
ମୋଦେ ଦ୍ରୁମ ସହିତ
ଆଳାପିବ ନବ ମର୍ମର
ଛଳେ ମାଧବୋଦିତ ! । ୮୦ ।

ତହୁଁ ସପ୍ତଚ୍ଛଦ କାନନ
ବସ୍ତୁ ମଧୁରତର
ନୟନ ସରଣି ପଥିକ
ହେବ ନିଶ୍ଚେ ତୁମ୍ଭର । ୭୧ ।
ଗହଳ ପଲ୍ଲବ ବସନେ
ଗୁପ୍ତ ତାରକୁସୁମ
ତେଜଇ ଭରହେ ସୁଗନ୍ଧ
ଛଳେ ନିଶ୍ୱାସ ଧୂମ । ୭୨ ।
କଳିକା ନିକର ମୁକୁତା
ଭୂଷା ମଣ୍ଡି ତା କାୟ
ଲୋଡ଼ଇ ମିତତା ତୁମ୍ଭର
ମାନ ନିରନ୍ତରାୟ । ୭୩ ।
ପଶ୍ଚାତ ବସୁନ୍ତ ଲବହେ
ଦଣ୍ଡେ ହର ଭ୍ରାନ୍ତ
ଲକ୍ଷ୍ମୀ ସାହଚର୍ଯ୍ୟୁ ମାଧବ
ପଦ୍ମ ରୁଚ ମଣ୍ଡିତ । ୭୪ ।
କରିବ ମିତତା ତା ସଙ୍ଗେ,
କ୍ଷଣେ ଅତିଥ୍ୟ ତାର
ଭେଜି ସମାଦରେ ଅଞ୍ଚଳ
ସ୍ତୁଥ ପବନ ସାର । ୭୫ ।
ତହୁଁ ଯିବ କଳ୍ପି ଉତ୍ତରେ
ନିଶ୍ଚେ ଦେଖିବ ତହୁଁ
ମନୋହର ନବମାଳିକା
ଗୃହ ରହିଛି ଯହୁଁ । ୭୬

ଝରିଥିବ ଶୁଭ୍ର କୁସୁମ—
ଝିଲ ଅତ ଜାଗତେ,
ଅର୍ଚ୍ଚିବ ଭୃମୃର ଚରଣ
ପଙ୍କେରୁହେ କରତେ । ୭୭ ।
ଭୃମୃର ବରହେ ତେଜିବ
ବୋଲି ନିଜ ଜୀବନ
ଅଳବାଳେ ଥୋଇ ଦେଇଚ
ହୃଦୁ କାଢ଼ି ବନ୍ଧନ । ୭୮ ।
ସହି ନ ପାରିବ ଭୃମୃର
ସେହୁ ଚିର ବରହ
ଅନାଶ୍ୱାସି ଗଲେ ସ୍ତ୍ରୀହତ୍ୟା
ପାପ ହେବ ନିଶ୍ଚୟ । ୭୯ ।
ନଗୃଇଣ ଅତ ଆନନ୍ଦେ
ତାକୁ କେତେକ କ୍ଷଣ
ହସାଇ ରସାଇ ଚଳିବ
ଆହେ ଧୀର ପବନ ! । ୮୦ ।
ନାଗେଶ୍ୱର ବନ ଦେଖିବ
ତହୁଁ କଛିହିଁ ଦୂରେ
ଲୋଟୁ ଥିବ ପୁଷ୍ପଭରରେ
ଶାଖା ପ୍ରଶାଖା ଭୂରେ । ୮୧ ।
ଉନ୍ନତ ସୁଗୁଣ ବସନ୍ତ !
ସେତ ଅଟେ ପ୍ରକୃତେ,
ଲଭିବେ ଭୃମୃର ଦର୍ଶନ
ହେଲେ ପୂର୍ବ ସୁକୃତେ । ୮୨ ।

ନଗ୍ରହ୍ଡ଼ବେ ବହୁ କ୍ଷଣ ସେ
ଦରଶାଇ ମିନତୀ,
ଖଳୁନ୍ତ ନିନାଦ କପଟେ
ପରକାଶି ପ୍ରିୟତା । ୮୩ ।
ପସ୍ୱଗ ମିଳିତ ମରନ୍ଦ
ଯାବ ଛଳେ ଅନଳ
ସୁଫସ୍ଫୁଟ-ଅର୍ଘ୍ୟେ ପୂଜିବେ
ତୁମ୍ଭ ପଦ କମଳ । ୮୪ ।
ଛାୟା ଦାନ କରି ନାଶିବେ
ତୁମ୍ଭ ସରଣି ଶ୍ରମ,
ସୁଗନ୍ଧ କୁସୁମ ସଞ୍ଚେ
ଦେବେ ସେହୁ ନିର୍ମମ । ୮୫ ।
ତୁମ୍ଭ ପଦତଳେ ନମିବେ
ନିଜ ଶାଖା ନ ପାଇ,
ଅଲିଙ୍ଗିବେ ଗାଢେ ତୁମ୍ଭଙ୍କୁ
ନିଜ ଆଶା ପୂରାଇ । ୮୬ ।
ତାଙ୍କ ଭକ୍ତି ଶ୍ରଦ୍ଧା ବିନତି
ଯେଉଁ ମୃଗବାହନ !
ନ କରିବ ତହିଁ ବିଳମ୍ବ
କେବେ ବହୁତକ୍ଷଣ । ୮୭ ।
ତହୁଁ ଯାଉଁ ଅତି ବିଚେଦ
କୀଡ଼ା ବସୁଧାଧର
ଦେଖିବ ବିବିଧ ଧାତୁରେ
ଦଣ୍ଡଥିବ ସୁନ୍ଦର । ୮୮ ।

ଶାଳ-ତାଳ-ମାଳ ତମାଳ
ଯାଡ଼ ଯାଡ଼ ଶୋଭଇ,
ଲବଙ୍ଗ କଙ୍କୋଳ ମରଡ
ବାସେ ମନ ହରଇ । ୮୯ ।
ଠାବେ ଠାବେ ସ୍ୱଚ୍ଛ ନିର୍ଝର
ଦୁଗ୍ଧ ବିଷାଦ ରେଖା
ପବ୍ୱ୍ୟେ ଦର୍ଶନ କରେ
ପାଉଥିବ ତ ଦେଖା । ୯୦ ।
ହରଡ଼ା ବାହାଡ଼ା ଅମ୍ବ ଳା
ପକ୍ୱ କଇଁଠ ଫଳେ
ପୂରିତ ଭୂରୁହ ସମୂହେ
ଥିବେ ତହିଁ ସୁଢ଼ଳେ । ୯୧ ।
ଶୁକ ସାରୀ ପିକ ବସନ୍ତ
ବନ୍ୟ କପୋତରମ୍ଭ
ପରକାଶ୍ଚ ଥିବେ ସଙ୍ଗୀତ —
ଭଙ୍ଗୀ ଦେଖାଇ ଲମ୍ଭ । ୯୨ ।
ରକ୍ତ ଶ୍ୟାମ ଶୁଭ୍ର ବଦନ
କପି-କୁଳ ସାନନ୍ଦେ
ବୃକ୍ଷୁ ବୃକ୍ଷାନ୍ତରେ କରତେ
ଡେଉଁଥିବେ ଅମନ୍ଦେ । ୯୩ ।
ହରଣ କର ମିଥୁନ
ଭବେ କୃଷ୍ଣ ଅନ୍ତରେ
ଦରଷ୍ଟର ଶୃଙ୍ଗ କଣ୍ଡୂତ
କରୁଥିବେ ସାଦରେ । ୯୪

ସୁସଜ୍ଜିତ ଲତା ଭବନେ
ରମ୍ୟ ମଣ୍ଡପ ପରେ
ପତ୍ର-ପୁଷ୍ପମୟ ସୁନ୍ଦର
ଶଯ୍ୟା ମାନସ ହରେ । ୧୫ ।
ଶୋଭଇ ଖୋଦିତ କନ୍ଦର
ଗୃହ ଅନେକ ତହିଁ
ଚତୁଃଷଷ୍ଠି ବିନ୍ଧ ବିଧାନ
କାରୁକାର୍ଯ୍ୟେ ଶୋଭଇ । ୧୬ ।
ସମସ୍ତେ ସମସ୍ତେ କନ୍ଦର
ସିଦ୍ଧ ଗନ୍ଧର୍ବଗଣ
ରମ୍ୟସ୍ଥାନ-ଦେଖି ତହିଁରେ
କରୁଥାନ୍ତି କ୍ରୀଡ଼ନ । ୧୭ ।
କୃତ୍ରିମ ଶାର୍ଦ୍ଦୂଳ କେଶରୀ
ମତଙ୍ଗଜ ବରାହ
ଭଲ୍ଲୁକ ପ୍ରଭୃତି ହିଂସ୍ରକେ
ରାଜମାନ ତା କାୟ । ୧୮ ।
ସଙ୍କେତ ସଙ୍ଗତ ରମଣ
ରମାମଣୀ କ୍ରୀଡ଼ନ
ହେଉଥିବ ତହିଁ ବହୁତ ॰
କରିବ ହେ ଦର୍ଶନ । ୧୯ ।
ମୃଦୁଭାବେ ତାଙ୍କୁ ଅଶ୍ଳେଷି
ଶ୍ରମ କରିବ ଦୂର
ପୁନର୍ବାର କ୍ରୀଡ଼ା ରଚନେ
ହେବେ ଯେଣେ-ଚତୁର । ୨୦ ।

ଏ ସକଳ ମନ ମୋହନ
ଦୃଶ୍ୟ ମାଧୁର୍ଯ୍ୟତତ
ଅବଲୋକ ଏକ ମୁହୂର୍ତ୍ତି
ଯିବ ତହୁଁ ଝଟତ । ୧୦୧ ।
କଛି ଦୂରେ କ୍ରୀଡ଼ା ତଡ଼ାଗ
ଯଜେ ତହୁଁ ଉତ୍ତରେ
ପୂର ରହିଅଛି ମଧୁର
ସ୍ୱଚ୍ଛ ସଲିଳ ଭରେ । ୧୦୨ ।
ଅଗାଧତା କଳ ନୁହଇ
ଷଟିକର ସୋପାନ
ଚଉଦ୍ଦଗେ ଶୋଭ ବସ୍ତାରେ
ନାହିଁ ତା ଉପମାନ । ୧୦୩ ।
ହଂସ କାରଣ୍ଡବ ଡ଼ାହୁକ
ଚକ୍ରବାକ ମିଥୁନ
କଳସ୍ୱନେ ପାର୍ଶ୍ୱ ମଣ୍ତ୍ର
ଯା'ର ସନ୍ତତେ ପୁଣ । ୧୦୪ ।
ଘାଟଜଳ ଗ୍ରାମାମଣିଙ୍କ
ଯକ୍ଷ କର୍ଦ୍ଦମ ରସ
ଅବର ଚନ୍ଦନ କୁଙ୍କୁମ
ପୂରେ ଦଶେ ସରସ । ୧୦୫ ।
ପଦ୍ମିନୀ ନକର ତହିଁରେ
କର ସର୍ବଦା ବାସ
ସଜ ପ୍ରସ୍ଫୁଟିତ ସୁମନ
ଛଳେ ପ୍ରକାଶି ହାସ । ୧୦୬ ।

ମଧୁପଙ୍କ ଗନ୍ଧାମୋଦ ବଶେ
ତହିଁ ମଧୁପଗଣ
ମଧୁପାନ କରି ଉନ୍ମତ୍ତେ
କରୁଥାନ୍ତି ଗୁଞ୍ଜନ । ୧୦୭ ।
ପ୍ରଭାତେ ବଣିକ-ଅମ୍ବର
ପସରାରେ ବହନ
ରଖିବା ବିଲୋକ ତପନ—
ପଦ୍ମରାଗ-ରତନ । ୧୦୮ ।
କିଣିବାକୁ ତହିଁ ନଳିନୀ
ନିଜ କୁସୁମ-କରେ
ଶିରକି ଦେଖାଏ ଉଚିତ
ମୂଲ୍ୟ ବୋଲି ସତ୍ୱରେ । ୧୦୯ ।
ସୌଗନ୍ଧିକ ନୀଳ ଉତ୍ପଳ
କୋକନଦ କୈରବ
ବିକାଶନ୍ତି ତହିଁ ସାନନ୍ଦେ
ନିଜ ଶୋଭା ବିଭବ । ୧୧୦ ।
ଶ୍ରୀପଦଶ୍ରୀ ମଧ୍ୟେ ବସନ୍ତେ
ଅତିଶଯ୍ୟ ସୁନ୍ଦରେ,
ଜଳଚରେ କ୍ରୀଡ଼ା କରନ୍ତି
ତହିଁ ପ୍ରମୋଦଭରେ । ୧୧୧ ।
ରମାଗଣେ ଅତି ଉଲ୍ଲାସେ
ନିଜ ନିଜ ବଲ୍ଲଭ
ଧରି ସଙ୍ଗେ ଖେଳେ ମାତନ୍ତି
କରି ସୁଖ ସୁଲଭ । ୧୧୨

ତାହା ଶୋଷଣି ଉତ୍ତମ
ଭବେ ହେବ ନୟନେ
ସୁଶୀତଳ ଗୁଣ ଧେନମ
ତହୁଁ ସାନନ୍ଦ-ମନେ । ୧୧୩ ।
କ୍ଷଣ ସହବାସେ ଲଭିବ
ପରିମଳ ନିଶ୍ଚୟ,
ଗମିବ ପୁରତେ ଉତ୍ତର—
ଦକ୍ଷେ ହେ ଗନ୍ଧବହ ! । ୧୧୪ ।
ତହୁଁ ଯାଉଁ ରୁମ୍ଭ ନୟନ
ପଥେ ହେବ ପଥିକ
ଅବିରଳ ଚୂତ କାନନ,
ମନହରେ ଅଧିକ । ୧୧୫ ।
ଗ୍ରୀଷ୍ମେ ଘନଛାୟା ବିତରେ
ଦୂର ପଥିକ ଜନେ,
ସ୍ୱାଦୁତର ଫଳ ଅରପି
ବନ୍ଦେ ସନ୍ତୋଷ ମନେ । ୧୧୬ ।
ତୁମ୍ଭ ମିତ୍ର ମନମଥର
ଶର-ଶିଳ୍ପ-କାରକ
ତାଙ୍କ ଗୃପବଲ୍ଲୀ-ସୁଗୁଣ—
ମଧୁକର ଗ୍ରାହକ । ୧୧୭ ।
ତହୁଁ ଡ଼ାଳେ ଡ଼ାଳେ ମଧୁର
ପୁଂସ୍କୋକିଳ ଯୁବକ
ରସାଳ ମଞ୍ଜରୀ ଅସ୍ୱାଦ
ହୋଇ ଅତି ମାଦକ । ୧୧୮ ।

କଳକଣ୍ଠେ ବିଶ୍ୱମୋହନ
କାମ ବୀଣା ଝଙ୍କାର
କୁହୁରବ ଛଳେ ନିରତେ
କରୁଛନ୍ତି ବିସ୍ତାର । ୧୧୯ ।
ତହୁଁ ଘନ ତରୁ ଗୁଳ୍ମାରେ
ହରି ଅଯୂନ-ଶ୍ରମ
ଜନମାଇଁ ଦେଇ ମାନସେ
ପଶୁ ପକ୍ଷି ବିଭ୍ରମ । ୧୨୦ ।
ଉନମାଦ ମଧୁ ସନ୍ଦୋହ
ପାନରତ ଭ୍ରମରେ,
ଚଳିବ ବିଳମ୍ବ ନ କରି
ବଦ୍ଧ ଗନ୍ଧ ଜମରେ । ୧୨୧ ।
କୁଶଳ ନିବେଦ୍ଧ ଚଳିବ
ପଥଶାଖି ନିକରେ,
ଢାଳୁଥିବ ସୁଧାସମ୍ପର୍କେ
ଚରୀ-ଚର ଉପରେ । ୧୨୨ ।
ତବ ଆଗମନ ଦେଖି କେ
ଅବା ନୋହିବ ସୁଖୀ,
ସକଳ ଦୁର୍ଗନ୍ଧ ତେଜନ୍ତି
ତବ ସଙ୍ଗମେ ଦୁଃଖୀ । ୧୨୩ ।
ହୀନ ଶ୍ରୀନ ରୋଗୀ ନିର୍ଦ୍ଧନ
ରାଜ ମୁକୁଟଧାରୀ
ତୁମ୍ଭମତେ ସର୍ବେ ସମାନ
ନାହିଁ ଊଣା କାହାରି । ୧୨୪ ।

ବରଷାଅ ଯେଣୁ ସବୁଁର
ମନେ ଆନନ୍ଦାମୃତ,
ଜଗତ୍‌ପ୍ରାଣ ନାମ ବହୁଛ
ଭୂତେ ଉତ୍ତମ ଭୂତ ! । ୧୨୫ ।
ପତ୍ରଶେ ପସଣେ ପସଣେ
ବଳ ବୀର୍ଯ୍ୟ ଉତ୍ସାହ,
ବଢ଼ାଅ ବୋଲି ତ ତୁମ୍ଭର
ନାମ ସୁଗନ୍ଧବାହ । ୧୨୬ ।
ଚରାଚର ପ୍ରାଣ ରକ୍ଷାର୍ଥେ
ଢାଳି ନିଜ ଜୀବନ
ଶୀଘ୍ରଗାମୀ ହେବୁ ଆଶୁଗ
ନାମ କର ଲମ୍ଭନ । ୧୨୭ ।
ଜଗତେ ମାନବ ଭକତ
ଶ୍ରଦ୍ଧା ସିଂହାସନରେ
ବସି ପୂଜାପାଅ ନିରତେ
ମରୁଦ୍ବର ! ସୁଖରେ । ୧୨୮ ।

—*] ପୂର୍ବାର୍ଦ୍ଧ ସମାପ୍ତ [*—



# ବାତ ଦୂତ

## ଉତ୍ତରାର୍ଦ୍ଧ

[ ରାଗ—ରାମକେରୀ ]

ବିଲୋକିବ ତହିଁ ସୁରମ୍ୟ
ପୁରି ସୁଷମା ଶିରୀ,
ତହିଁର ଉତ୍ତୁଙ୍ଗ ପ୍ରାସାଦେ
ଯଥା କୈଳାସ ଗିରି । ୧ ।

ଛନ୍ତି ତହିଁ ଗୌରୀ ସୁନ୍ଦରୀ
ସଦାଶିବ ମୂରତି,
ଯକ୍ଷ୍ୟଧର ଗଣନାୟକେ
ଶୋଭେ ସେହୁ ଧରଣୀ । ୨ ।

ପାଞ୍ଚ ସାତ ତଳ ପ୍ରାସାଦେ
ଅହା କି ମନୋହର
ତା ଶିଖେ ବିବିଧ ପତାକା
ଉଡଇ ଫରହର । ୩ ।

ଅଛନ୍ତି କି ସୁରଧୂନିରୁ
ଆଣି ସଲିଳ ପୂର
ଭରିଥିବ ଅଭିଷେଚନ
ଜାଣି ଅତି ମଧୁର । ୪ ।

ଅଭ୍ରଂଲିହ ଗୃହରୁ ପ୍ରାସାଦ
ଶୋଭି ସ୍ୱର୍ଣ୍ଣ କଳଶ
ଦେଖିଲା ମାତ୍ରକେ ଦର୍ଶକ
ଚିତ୍ତହୁଏ ସରସ । ୫ ।
ତହିଁ ପରେ ମୀନ-ନୟନା
ସର୍ବ ଲକ୍ଷଣବତୀ
ବିବିଧ ବିଳାସ ବସନା
ଛନ୍ତ ମାତଙ୍ଗ ଗତି । ୬ ।
ଯାଂ କୁ ଦେଖି ଶଙ୍କ ଚିତ୍ତରେ
ରମ୍ଭା ଉର୍ବଶୀ ଭ୍ରମ
ଉପୁଜଇ ସ୍ୱର୍ଗ ସୀମାରେ
ଯେଣୁ ତାଙ୍କ ବିଭ୍ରମ । ୭ ।
ଜଳଦ ପଟଳ ସୋପାନେ
ଦେଇ ନିଜ ଚରଣ
ଭ୍ରମଣ ପ୍ରାସାଦେ ଚଳନ୍ତି
ଯହିଁ ରମଣୀ-ଗଣ । ୮ ।
କଳକଣ୍ଠେ କଳନାଦିନୀ
କୁଳ ଆଳାପ ଶୁଣି
ଧ୍ୟାନ ତେଜ ସପ୍ତଋଷିଏ
ତନ୍ତ୍ରା କୁଳିତ ପୁଣି । ୯ ।
ତାଙ୍କର ସଙ୍ଗୀତ ଅମୃତ
ଧ୍ୱାନ ସୁରମ୍ୟଗଳ
ତହିଁ ଜାତ ନାଦ-ଅମୃତ-
ପାନେ ହୋଇ ତରଳ । ୧୦ ।

କେଉଁ ସୁରଙ୍ଗନା ହୁଅଇ
ଦପାଉର ବଦଣା
କେଅବା କରଇ ଅସୂୟା
ଲଭି ଅମର୍ଷ ଦଶା । ୧୧ ।
ସେ ରମ୍ୟ ପ୍ରାସାଦ ଉପରେ
ମହା ସୁଖରେ ବସି
କେଉଁ ବୀଣା ଜଣା ନାଦନୀ
ବୀଣା ବଜାଏ ରସି । ୧୨ ।
ସେ ଝଙ୍କାର ବଣେ ବିହ୍ୱଳ—
ତବ କାମ ରମଣ
ପ୍ରିୟା ପାଶେ ଥାଇ ସ୍ୱରରେ
କରେ ଅନୁକରଣ । ୧୩ ।
ବାସନ୍ତିକ ପିକ ପଞ୍ଚମ
ସ୍ୱର ତାହା ପୁରତେ
ଗଣନାରେ ଯୋଗ୍ୟ ନୋହିବ
ଜାଣ ଅନିଳ ! ସତେ । ୧୪ ।
ଶାରଦ ବାରଦ ପଟଳେ
ଖେଳେ ଯଥା ଚପଳା
ଝଟକନ୍ତି ତଥା ସେ ହର୍ମ୍ମ୍ୟ-
କୋଳେ ସଦା ଅବଳା । ୧୫ ।
ବସନ୍ତାଦି ଷଡ ଋତୁଏ
ଯଥା ନନ୍ଦନ ବନେ
ସେବନ୍ତି ନରତେ ତହିଁରେ
ଅତି ଆନନ୍ଦ ମନେ । ୧୬ ।

ସ୍ୱର୍ଗ ସୁଖ ଯହିଁ ଭୋଗନ୍ତି
ଯୁବା ଯୁବତୀ ଗଣ,
ନ ଜାଣନ୍ତି କେବେ କେବଣ
ଜନ ଅସୁଖ କଣ । ୧୭ ।
ସେ ରାଜ୍ୟର ରାଜ ନଗର
ସର୍ବ ଭୁବନୁଁ ବର
ହରଇ ଦର୍ଶକ ମାନସ
ଯେଣୁ ବଡ଼ ସୁନ୍ଦର । ୧୮ ।
କି ବର୍ଣ୍ଣିବ ତାର ଉପମା
ଦେଖି ନଜୁଁ ବଳକା
ପଜର ପ୍ରାସାଦ କପଟେ
ଝୁଡ଼କରେ ଅଳକା । ୧୯ ।
ତାହାର ଉନ୍ନତ ମହିମା
କେହି ପାରିବ କହି,
ନନ୍ଦନୁ ତୋଳନ୍ତି ମନ୍ଦାର
ଯାହା ଉପରେ ରହି । ୨୦ ।
ଯା ଚନ୍ଦ୍ର ଶାଳିକା ପଞ୍ଜର
ଶୁକ ଶାରିକାଗଣ
କରୁଥାନ୍ତି ରମ୍ଭା ମେନକା
ଗାନ ଅନୁକରଣ । ୨୧ ।
ଅନିମେଷ ନର୍ତ୍ତିମେଷରୁ
ମାଧ ନାଗରୀଙ୍କର
ଦେବ ମାନବାଙ୍କୁ ବ୍ୟଞ୍ଜକ
ହୁଏ ବାତ ପ୍ରବର ! । ୨୨ ।

ନବ ନବ ରତ୍ନ ନକରେ
ସୁନିର୍ମିତ ଭବନ—
କରେ ବରଚଇ ମଘବା
ଶତ ସୁଶରସନ । ୨୩ ।

ଶତ ଶତ ଚନ୍ଦ୍ର ସୂର୍ଯ୍ୟର
ମଧୁରମା ଗରବ
ଯହିଁରେ ଖଚିତ ରତନେ
ସଦା କରେ ଖରବ । ୨୪ ।

ସ୍ୱପୁର ବଭ୍ରମେ ମହେନ୍ଦ୍ର
ହେଲେ ପ୍ରବେଶି ଯହିଁ
କ୍ଷମା ଭକ୍ଷା ନଜେ କରନ୍ତ
ନୃପ ପୁରତେ ରହି । ୨୫ ।

ସ୍ୱବାମ ଲୋଚନା ମନାସି
ଯହିଁ ଦେବ ନକର
ଅଳାପି ରହିସେ୍ୟ ଲଭନ୍ତ
କାମ୍ୟବାସ ସତ୍ୱର । ୨୬ ।

ନାରୀ-ମୁଖ ଶ୍ମଶ୍ରୁ ରମ୍ୟତା
ବଶେ ଯହିଁ ରଜନୀ
ଶାରଦ ପୂର୍ଣ୍ଣିମା ଭବର
ଲାଭେ ଶୋଭେ ଅବନୀ । ୨୭ ।

ରାଜ ରାଜେଶ୍ୱର ଯଯାତ
ଛନ୍ତ ସେହି ନବରେ
ରାଜନ୍ୟ ମଣ୍ଡଳ ମଣି ସେ
ପୂର୍ଣ୍ଣ ସର୍ବ ଗୁଣରେ । ୨୮

ଶୌର୍ଯ୍ୟଭରେ ଷଟ୍‌ବଦନ
ପରିହାସେ ତତ୍ପର
ଷୋଡ଼ଶ କଳା କଳିତ
ଚନ୍ଦ୍ରମୁଖେ ସୁନ୍ଦର । ୨୯ ।
କେଶ ଅନ୍ଧକାର ଭୟରୁ
ଲଭି ନଥିଲ ସ୍ଥାନ
ଅର୍ଦ୍ଧ ସୁଧାକର ସୁଷମା
କରେ ବିବର୍ଦ୍ଧମାନ । ୩୦ ।
ଏଣୁ ଭାବେ କାମ ସର୍ବଦା
ରଖି କୃଷ୍ଣ ଅଷ୍ଟମୀ
ସାଥେ ହରଜଟ୍ୟେ ମସ୍ତକ
ସିଦ୍ଧେ ହୋଇଣ ଶ୍ରମୀ । ୩୧ ।
ତପସ୍ୟାନୁ ରତ ମାନସେ
ପାସେ ଭ୍ରୂଲତା ଛଳେ
ଥୋଇ ଦେଇ ନିଜ କୋଦଣ୍ଡ—
ଦଣ୍ଡ ସଜେ ଯୁଡ଼ଳେ । ୩୨ ।
ତାରା-ଛଳେ ତାଙ୍କ ନୟନ —
ପଦ୍ମ—ଯୁଗେ ବିରଞ୍ଚି
ରଖିଛ ଷଟ୍ପଦ ଦମ୍ପତି
ସାକ୍ଷିଭାବେ ବିରଚି । ୩୩
[illegible]ନଣରେ ଜନ ଜଗତ
ଯେଣୁ କାମ ଦେବର
ଶେଷଶର ଯୁଗ ତୂଣୀର —
ବଡ ନାସା ସୁନ୍ଦର । ୩୪ ।

ତେଣୁ ସିନା ବହେ ତହୁଁରୁ
ଶ୍ୱାସ ସୁପରିମଳ
ନାହିଁ ତ ନ ଥିବ ଜଗତେ
ଦେହେ ସୁମନୋହର । ୩୫ ।
ଅମ୍ଳାନ ପଙ୍କଜ ଯୁଗଳ
ନିଶ୍ଚେ ତାଙ୍କ ନୟନ
ଜେଣୁ ମ୍ଳାନ ନୁହେ ଲଭିଣ
ମୁଖ ବିଧୁ କିରଣ । ୩୬ ।
ନବ ନବ ଅଙ୍କେ ଖୋଦିତ
କର୍ଣ୍ଣ ଯୁଗଳ ଛଳେ
ନବ ନବ ବିଦ୍ୟା ନିପୁଣ
ଯେଣୁ ପ୍ରତିଭା ବଳେ । ୩୭ ।
ଗଣ୍ଡଦ୍ୱୟ ଅତି ମଧୁର
ଯେହ୍ନେ କାମ ଦର୍ପଣ
ଜିଣିଚ ଅଧର ବନ୍ଧୂକ—
ପୁଷ୍ପ ସୁଷମାଗଣ । ୩୮ ।
ଗୁଣଗଣ ନିଶ୍ଚେ ଗଣନା
କରିଅଛି ଏହାର
ରେଖା ଦେଇଅଛି ଅଧରେ
ତେଣୁ ବିଧି ନିକର । ୩୯ ।
ରମ୍ୟ ଗଳ ସତେ ବିପଞ୍ଚୀ
ଦେବୀ ଭାରତୀଙ୍କର
ତେଣୁ ପରକଟେ ତହୁଁରୁ
ଶବ୍ଦ ସୁ-ମନୋହର । ୪୦ ।

କବାଟ ଦୁର୍ଦ୍ଧର୍ଷ ଅବୃତ
ରମ୍ୟ ହୃଦୟ ସ୍ଥଳ
ଦର୍ଶକ ମାନସ ମୋହକ
ଅହା କେଡ଼େ ସୁନ୍ଦର । ୪୧ ।

ଭୁଜ ଯୁଗ ଦୃଢ଼ ଅର୍ଗଳ
ପୀନ ପୃଥୁଳ ତର
ଅରସ୍ତର ଭଙ୍ଗେ ଚତୁର
ବାସ ପଦ୍ମ-ଭ୍ରମର । ୪୨ ।

ଅଙ୍ଗୁଳି ନକର ନସ୍ତମ୍ଭେ
ସ୍ୱର୍ଣ୍ଣ ଚମ୍ପକ କଳୀ —
ସୁଷମା ସମ୍ପଦ ହରଣେ
ଅଟେ ଅତନ୍ଦ୍ର ବଳୀ । ୪୩ ।

ରୋମାବଳୀ ଶୋଭେ ନବହେ
କାମ ଜାଙ୍ଗଳକର
କୃଷ୍ଣନାଗ ଗର୍ବ ଖର୍ବ
କରନ୍ତି ସେ ସତ୍ୱର । ୪୪ ।

ଉଦରର ଶୁଭ୍ର ମାଧୁର୍ଯ୍ୟ
ଅହା କେଡ଼େ ମଧୁର
ଦର୍ଶନ ମାତ୍ରକେ ମାନସ
ମୋହ ହୁଏ, ଚତୁର ! । ୪୫ ।

ପଦ୍ମ ସୃଷ୍ଟି ମଧ୍ୟେ ନୃପତି
ତାଙ୍କ ଚରଣ ଦ୍ୱୟ
ଯେଣୁ ସୁଲକ୍ଷିତ ସହସ୍ର
ପଦ୍ମଙ୍କର ଆଶ୍ରୟ । ୪୬ ।

ସର୍ବ ସୁଲକ୍ଷଣ ନିଳୟ
ରମ୍ୟ ତର ଅରୁଣ
ଲୋଚ ଦେଖିଲେ ଦର୍ଶନ
ତନ୍ମୟ ହୋଇ ଅତୂର୍ଣ୍ଣ । ୪୭ ।
ସ୍ବର୍ଣ୍ଣ କେତକୀ ବରନ
ରୁଚ୍ଚ କରେ ଯା କାନ୍ତି,
ମୂର୍ତ୍ତିମନ୍ତ କାମ ସାକ୍ଷାତେ
ବୋଲି ଯାହାଙ୍କ ଖ୍ୟାତି । ୪୮ ।
ପାଣ୍ଡିତ୍ୟେ ଅଙ୍ଗିରା ନନ୍ଦନ,
ଜିଷ୍ଣୁ ଜବପଣରେ,
ଶବ୍ଦେ ପବନ ଦେବସେ
ପୂର୍ଣ୍ଣ ସର୍ବ ଶାସ୍ତ୍ରରେ । ୪୯ ।
କୁବେର ଧ୍ବଜ୍ଜୀର ସମ୍ପଦେ,
କ୍ଷମା ଗୁଣରେ କ୍ଷମା,
ଶୂରୁଯ୍ୟ ଗାମ୍ଭୀର୍ଯ୍ୟ ଧର୍ଯ୍ୟେ
ଖ୍ୟାତ ଯା ଅନୁପମା । ୫୦ ।
ସୁ-ସମୟ ଦେଖି ତାହାଙ୍କୁ
ଜଣା କରିବ ଯାଇ
ହର୍ଷେ ବସିଥିବେ ଯେବେ ସେ
ସ୍ବମା ସଙ୍ଗ ନ ପାଇ । ୫୧ ।
ଉତ୍ସୁକାଇ ଦେଉ ଭୁମୂର
ସ୍ରୋତେ ତାଙ୍କର ଚିତ୍ତ
କାମବାଣେ ଅଧୀର କରାଇ
ତାଙ୍କ ତନୁ କମ୍ପିତ । ୫୨ ।

ଉଛୁଳାଇ ତାଙ୍କ ସର୍ବାଙ୍ଗେ
ଗୃହ୍ଣୁ ପୁଲକାବଳୀ
ଛନ୍ଦ ଛନ୍ଦ ମନ କରାଇ
ଅବିରତେ ତାଙ୍କର । ୫୩ ।
ମୋତେ ନେଇ ପ୍ରଭଞ୍ଜନ ହେ !
ରଖି ତାଙ୍କ ଅନ୍ତରେ
କହ ମୋ ସନ୍ଦେଶ ଅଣାଅ
ଏଥି ମୃଗାକ୍ଷୀ ଛଳେ । ୫୪ ।
କହିବ ଅସୁର ନରେଶ
ବୃଷପର୍ବା ତନୟା
ଝୁରି ମରୁଅଛି କର ହେ
ଥରେ ତାଙ୍କୁ ସଦୟା । ୫୫ ।
ଦାସୀଭାବେ ଅଛି ଥିଲେହେଁ
ସେ ତ ନୃପତି ସୁତା
ତୁମ୍ଭ ବିନା କାମାନଳେ-ସେ
ପୋଡ଼ି ହୋଇବେ ମୃତା । ୫୬ ।
ନୋହିବ ଅଧର୍ମ ତୁମ୍ଭର,
ଦାସୀ ଯେଣୁ ପ୍ରଭୁର,
ଧର୍ମ କି ନ ଜାଣ ତୁମ୍ଭେ ହେ,
କି କହିବ ସୁମୁର । ୫୭ ।
ସକଳ ଧର୍ମର ଆଳୟ
କେହ୍ଣେ ତେଜିବ ଧର୍ମ
ଲଙ୍ଘିଲେ ଧରମ ମୋହର
ନଷ୍ଟେ ଫାଟିବ କର୍ମ । ୫୮ ।

ଦେଖିଲି ସୁନ୍ଦର ମୂରତି
　　　　　　ଯେଉଁ ଦିନୁ ତୁମ୍ଭର
ଘାର ଦେଉଅଛି ଅତନୁ
　　　　　　ବାଟଣ ତନୁ ମୋହର । ୬୯ ।
କେତେବାର କଲି ସଙ୍କଳ୍ପ,
　　　　　　କେତେ ହର ଗଉରୀ
ପୂଜିଲି ମନାସି ତୁମ୍ଭଙ୍କୁ
　　　　　　ଭକ୍ତି ଶ୍ରଦ୍ଧାରେ ପୂରି । ୭୦ ।
ନୁହେ ନଦ୍ରା ସହେ ଦିନେ, ହେ !
　　　　　　ଯଦି ହୁଏ ସୁଯୋଗେ,
ହୁଏ ଆନନ୍ଦତା ତାଙ୍କର
　　　　　　ସୁଖମୟ ସମ୍ଭୋଗେ । ୭୧ ।
ଏଣୁ ଉଛେ ସଦା ସ୍ୱପନ,
　　　　　　ମାତ୍ର ନ ଆସେ ତାହା,
ମନ୍ଦ ଭାଗ୍ୟଜନେ ଇପ୍ସିତ
　　　　　　ଲଭ ହୁଅଇ କାହା । ୭୨ ।
ତାଙ୍କ ନାମଗୁଣ ମୋହର
　　　　　　ଜାଣ ପ୍ରାତଃସ୍ମରଣ,
ତାଙ୍କର ଦର୍ଶନ କାମନା
　　　　　　ମୋର ମ୍ଳାନ ବଦନ । ୭୩ ।
ବଚନ ଅମୃତ ତାଙ୍କର
　　　　　　ପାନେ ମୋହର ଇଚ୍ଛା,
ଅମୃତ ସମାନ ଭୋଜନେ
　　　　　　ଜନ୍ମେ ମୋର ଅନିଚ୍ଛା । ୭୪ ।

ସକଳ ଦୈନିକ କୃତ୍ୟ ତ
ତାଙ୍କ ନାମ ଚନ୍ଦନ,
ସେଥିଲାଗି ପ୍ରତି ପ୍ରଭାତେ
କରେ ବନ୍ଧୁ ବନ୍ଦନ । ୭୫ ।
ନପାଇଲେ ତାଙ୍କୁ ବାରେକ
କରି ଉଦବନ୍ଧନ
ଛାଡ଼ଦେବ ନଷ୍ଟେ କରୁଚ
ମୋର ପ୍ରାଣଗଣ । ୭୬ ।
ଅଥବା ଖାଇବ ଗରଳ
କରି ଅତି ଆଦର
ଶମନ ସଦନେ ହୋଇବ
ଅଗନ୍ତୁକା ଏଥର । ୭୭ ।
ଅଥବା ଅନଳେ ଅହୁତ
ଦେବ ଏ ତନୁ ମୋର
ଦଗ୍ଧିବ ନାହିଁ କ୍ଷଣତେ
ଚଢ଼େ ଏକର୍ମ ଘୋର । ୭୮ ।
ଜଳରେ ପ୍ରବେଶି ସାରିବ
ମୋର ଏ ଭବଲୀଳା
ଏ କରିବ ଅଜ ଉନ୍ମାଦ
କାମ, ଲଭିଁ ସେ କ୍ରୀଡ଼ା । ୭୯ ।
ଅଥ ତା ଯାତନା କ୍ଷଣତେ
ମୁହିଁ ସହି ନ ପାରେ,
କେସନେ ରଖିବ ଜୀବନ
ଅଛି ତାଙ୍କ ଧନାରେ । ୮୦ ।

କହିବ ଅନଳ ! ଏହାଙ୍କୁ
ଏ ମୋ ସନ୍ଦେଶ ବାଣୀ,
ଆସିଥିଲେ ଏହି ବନକୁ
ହୋଇ କୋଦଣ୍ଡପାଣି । ୭୧ ।
ଅତି ଶ୍ରାନ୍ତ ହୋଇ ଥିଲେ ସେ,
ମୃଗ ଅନ୍ୱେଷି ବନେ
ମୋ କୁଟୀରେ ହେଲେ ଅତିଥି
ଶ୍ରମ ତେଜିବା ମନେ । ୭୨ ।
ଚରଣେ ତାଙ୍କର ସେକ୍ଷଣି
କରି ପ୍ରଣାମାବଳି
ପୂଜିଲି ଷୋଡ଼ଶୋପଚାରେ
ତାଙ୍କ ପଦାବ୍ଜକଳି । ୭୩ ।
ବନସ୍ତି ବହୁତ କହିଲି
କରଯୋଡ଼ି ପୁରତେ,
ଦସ୍ୟୁକର ତେବେ କହିଲେ
ନର ନାୟକ ମତେ । ୭୪ ।
ତୁମ୍ଭେ ଦାସୀଜନ ହେଲେହେଁ
ନୁହ ପ୍ରକୃତ ଦାସୀ
ଦେବଯାନୀ କୋପେ ଘଟିଲା
ସିନା ଏହା ସୁହାସି ! । ୭୫ ।
ତଥାପି ତୁମ୍ଭେ ତ ମୋହର
ଅଟ ପ୍ରେମ ଅଧାର
ସୁନ୍ଦରୀ ମଉଳି ରତନ !
ଏ ବାକ୍ୟ ନିସ୍ତାର । ୭୬ ।

ରହିବାକୁ ଦିନ କେତେକ
କଲି ମୁଁ ଅନୁରୋଧ,
ତା ଶୁଣି କମ୍ପିଲେ ଭୟରେ
ଯଥା ଅତି ନବୋଧ । ୭୭ ।

ଏକଅଟେ଼ କାମୁ, ଅପର
ଅଟେ଼ ଭାର୍ଗବୁଁ ଭୟ
ଲୁମ୍ଭର ମାନସେ ସେକ୍ଷଣି
ହୋଇଗଲା ଉଦୟ । ୭୮ ।

ଦିନେ ନୃପ ଅନ୍ତଃପୁରରୁ
ଆସି ଯୁବତିଗଣ
ରକ୍ତାଶୋକ ମୂଳେ ମଦନ
କରୁଥିଲେ ପୂଜନ । ୭୯ ।

ଏ ସମୟେ ମମ ଅଭୀଷ୍ଟ
କଳ୍ପଲତିକା ଫଳ
ଉପଗତ ହେଲେ ନରେଶ
ଦିବ୍ୟବେଶେ ସୁନ୍ଦର । ୮୦ ।

ଦେଖି ସୀମନ୍ତିନୀ ସକଳେ
ତରତରେ ଉଠିଲେ
ସ୍ୱର୍ଣ୍ଣଭଦ୍ର ପୀଠ ଉପରେ
ବିଜୟେ କରାଇଲେ । ୮୧ ।

ସୁଗନ୍ଧ ଚନ୍ଦନ ସର୍ବାଙ୍ଗେ
ଦେଲେ ବୋଳି ହରଷେ
ସୁବାସ କର୍ପୂର ଅରପି
ମାତି ଗଲେ ସେ ରସେ । ୮୨ ।

ତାମ୍ବୂଳ ଘଣ୍ଟିକା ଅନ୍ୟୋନ୍ୟ
କଲେ ତହିଁ ବର୍ଣ୍ଣନ
ମାଳା ଦେଲେ କେତେ ପ୍ରକାରେ
ଗୁନ୍ଥି ଗୁରୁ ସୁମନ । । ୩ ।
ଧୂପ ଦୀପ ବସ୍ତ୍ର ଉତ୍ତରେ
କଲେ ତହିଁ ଆରତି
ପ୍ରଦକ୍ଷିଣ କରି ରଚିଲେ
ସର୍ବେ ଭାବ ବ୍ୟକତି । ୮୪ ।
କଟାକ୍ଷ ବସ୍ତ୍ରସ୍ଥ ସୁସ୍ମିତ
ହାସ ଭୂଷଣ ଅଦ୍ଧ
ଶୃଙ୍ଗାର ବିଭବ ସେ କାଳେ
ବହୁଗୁଣେ ସମ୍ବାଦ୍ଧ । ୮୫ ।
କ୍ରମେ କ୍ରମେ ହେଲା ଶୃଙ୍ଗାର
ତହିଁ ପରିବର୍ଦ୍ଧିତ,
ଚର୍ଚ୍ଚରି କ୍ରୀଡ଼ନେ ସବୁରି
ଅଙ୍ଗ ହେଲା ଶୋଭିତ । ୮୬ ।
କାମୁକ ପ୍ରକର ମଦନ
ତୀକ୍ଷ୍ଣବାଣ ସଞ୍ଚୟେ
ହୋଇଲେ ଉନ୍ମାଦେ ଉନ୍ମତ୍ତ—
ତମ ସେହ୍ନ ସମୟେ । ୮୭ ।
ପଶିଲେ ଯାଇଣ ସଲିଳେ
ଶୃଙ୍ଗ ଶୋଭିଇ କରେ
ଜଳ ମରମରି ହୋଇଲେ
ଅତି ଆନନ୍ଦ ଭରେ । ୮୮ ।

ଦେଖୁଥିଲି ନିଜ କୁଟୀରେ
ସେହି ଅମୀୟ ଖେଳା
ବୁଡ଼ି ଯାଉଥିଲି ଶୃଙ୍ଗାର
ଊର୍ମିମାଳେ ମୋ ଭେଳା । ୮୯ ।
କଟାକ୍ଷେ ଦେଲେ ସେ ସଙ୍କେତ
ଯେଣୁ ନୃପମନ୍ତ୍ରେ ନ
କିଛୁ ଧନ ପାଇଁ ରଖିବ
ଏହି ଗ୍ରୀର ଜୀବନ । ୯୦ ।

—* ଉତ୍ତରାର୍ଦ୍ଧ-ସମାପ୍ତ *—



Printed by S. B. Rath